## କଥା ପଦେ

ଆଧୁନିକ ସମୟ ବିଜ୍ଞାନର ସମୟ। ସାନଠାରୁ ବଡ ଯାଏଁ ଆଜି, ସବୁ ମଣିଷଙ୍କ ପାଇଁ ବିଜ୍ଞାନର ନୂଆ ନୂଆ ତଥ୍ୟ ଏକ ମୁଖ୍ୟ ଆକର୍ଷଣ ପାଲଟିଛି। ମଣିଷ ଚ୍ାହେଁ ତା'ର ପରିସରକୁ ଭଲ ଭାବରେ ଜାଣିବ। ସେ ବିଷୟରେ ଅଧିକ ଉପାଦେୟ କଥାସବୁ ସଂଗ୍ରହ କରିବ। ଏ କୌତୁହଳ କିନ୍ତୁ ପିଲାମାନଙ୍କ କ୍ଷେତ୍ରରେ ବେଶ୍ ପ୍ରବଳ।

ସେଇ କୌତୁହଳକୁ ଆଖିରେ ରଖି ଏଥିରେ କେତୋଟି ସହଜ ସରଳ ବିଜ୍ଞାନପହଳି ଏକତ୍ରିତ କରାଯାଇଛି।

ପହଳି ମାଧ୍ୟମରେ ବିଜ୍ଞାନ ଓ ସାହିତ୍ୟକୁ ଏକାଠି କରି ନୂଆ ଧରଣର ଏକ ରସବୋଧ ତିଆରି କରାଯାଇପାରେ। ତାହା ହିଁ ଏ ଛୋଟ ବହିଟିର ଅସଲ ଉଦ୍ଦେଶ୍ୟ। ଆଶା ଓ ବିଶ୍ୱାସ, ପହଳିଗୁଡିକ ପିଲାମାନଙ୍କୁ ଭଲଲାଗିବ।

ଦାଶ ବେନହୁର

# ବିଜ୍ଞାନପହଲି

ରଚନା
ଦାଶ ବେନହୁର

ପ୍ରକାଶକ
ସୃଜନିକା
ଜାଗମରା, ଖଣ୍ଡଗିରି
ଭୁବନେଶ୍ୱର ୭୫୧୦୩୦
ଫୋନ . ୪୭୦୬୬୪

୧୯୯୮

# ବିଜ୍ଞାନପହଲି

ରଚନା
ଦାଶ ବେନହୁର

ପ୍ରକାଶକ
ସୃଜନିକା,
ଜାଗମରା, ପୋ. ଖଣ୍ଡଗିରି,
ଭୁବନେଶ୍ୱର ୭୫୧ ୦୩୦

ମୁଦ୍ରଣ
ଶୋଭନ
୧୦୬, ଆଚାର୍ଯ୍ୟ ବିହାର,
ଭୁବନେଶ୍ୱର

ପ୍ରଥମ ପ୍ରକାଶ
ଫେବୃଆରୀ ୨୬, ୧୯୯୮

ମୂଲ୍ୟ ଟ୮.୦୦

# Bigyanpahali

**Written by:**
Das Benhoor

**Publisher**
SRUJANIKA,
Jagamara, p.o.Khandagiri
Bhubaneswar 751 030

**Printing**
Shovan,
106, Acharya Bihar,
Bhubaneswar

**First published**
February 26, 1998

*Price: Rs.8.00*

# ଆମ କଥା

ଗଣିତରେ ମାନସାଙ୍କ ଯେଭଳି ମଜାଦାର, ସାହିତ୍ୟରେ ସେଭଳି ପହଳି । ମାନସାଙ୍କରେ ସଂଖ୍ୟାକୁ ନେଇ କେତେ ପ୍ରଶ୍ନ ସବୁ ତିଆରି ହୋଇଥାଏ ଯାହାକୁ ମନେ ମନେ ହିସାବ କରି କହିବାକୁ ହୋଇଥାଏ । ସେହିଭଳି ପହଳି ଭାବକୁ ନେଇ ରଚନା କରା ଯାଇଥାଏ । ତେଣୁ ପହଳିକୁ ସାହିତ୍ୟ ମାନସାଙ୍କ କହିଲେ କିଛି ଭୁଲ ହେବନାହିଁ । ଦେଖିବାକୁ ଗଲେ ପହଳିଗୁଡ଼ିକ ବେଶ ମନୋରଞ୍ଜକ । ଏଗୁଡ଼ିକ ସରଳ ଏବଂ ନିତିଦିନିଆ ଜିନିଷକୁ ନେଇ ତିଆରି ହୋଇଥାଏ । ପହଳିରେ ଯେ କେବଳ କିଛି ପ୍ରଶ୍ନ ଥାଏ ତା'ନୁହେଁ, ଅନେକ ଜାଣିବା କଥା, କିଛି ତଥ୍ୟ ମଧ୍ୟ ଥାଏ ।

ପିଲାର ଖୁଜୁବୁଜିଆ ମନ ଓ ଅଧିକରୁ ଅଧିକ ଜାଣିବାର ଇଚ୍ଛାକୁ ପହଳିଗୁଡ଼ିକ ସାହାଯ୍ୟ କରନ୍ତି । ଏଥିରେ କଳ୍ପନାର ଯେଉଁ ଛୋଟ ଖିଅ ଜାଲଟିଏ ବୁଣିବା ଆରମ୍ଭ କରାଯାଏ, ତାହା ପିଲାମାନଙ୍କୁ ନିଜ ନିଜ ଜାଲ ବୁଣିବାରେ ବେଶ୍ ସାହାଯ୍ୟ କରେ । ଏଇ ଜାଲ ବୁଣିବା ହିଁ ଭବିଷ୍ୟତରେ ଆଗେଇବା ପାଇଁ ପ୍ରେରଣା ଯୋଗାଇଥାଏ । ପହଳିଗୁଡ଼ିକ ଗୀତ, ଭାବ, ଆମୋଦ, କଳ୍ପନା, ସୂଚନା, କୌତୁହଳ ଓ

ଛନ୍ଦର ଏକ ଅପୂର୍ବ ସମନ୍ୱୟ ।

ଗତବର୍ଷ ବିଜ୍ଞାନ ତରଙ୍ଗର ପ୍ରତିଟି ସଂଖ୍ୟାରେ ଆମେ ଏହିଭଳି କିଛି ପହଳି *ସାହିତ୍ୟ ମାନସାଙ୍କ* ଭାବରେ ଦେଉଥିଲୁ । ପିଲାଠାରୁ ବଡ ଯାଏଁ ସମସ୍ତଙ୍କୁ ଏହା ଭଲ ଲାଗୁଥିଲା । ପହଳିର ଏହି ଲୋକପ୍ରିୟତାକୁ ଦେଖି ଆମେ ଚିନ୍ତା କଲୁ ବିଜ୍ଞାନର ବିଭିନ୍ନ ବିଷୟକୁ ନେଇ ଏଭଳି ପହଳି ସବୁ କଲେ କେମିତି ହୁଅନ୍ତା ? ପ୍ରଥମେ ପରୀକ୍ଷାମୂଳକ ଭାବରେ କିଛିଟା ବିଜ୍ଞାନପହଳି ଦେଲୁ । ସାହିତ୍ୟ ମାନସାଙ୍କ ଭଳି ଏଗୁଡିକ ମଧ୍ୟ ବେଶ୍ ଆଦୃତ ହେଲା । ତେଣୁ ଗତ ବର୍ଷମାନଙ୍କର ବିଜ୍ଞାନ ତରଙ୍ଗରେ ବାହାରିଥିବା ବିଭିନ୍ନ ଜୀବଜନ୍ତୁ, ଗଛଲତା ଓ ଅନ୍ୟାନ୍ୟ ବିଷୟ ସବୁକୁ ନେଇ ଏଇ ପହଳିଗୁଡିକ କରାଗଲା । ଯେଉଁମାନେ ନିୟମିତ ବିଜ୍ଞାନ ତରଙ୍ଗ ପଢୁଥିବେ ସେମାନଙ୍କୁ ଏଇ ପହଳିଗୁଡିକ ବହୁତ ମଜା ଲାଗିବ ଏବଂ ସେମାନେ ଏସବୁର ଉତ୍ତର ବେଶ୍ ସହଜରେ ଦେଇପାରିବେ ।

ଆଶା କରୁଛୁ ଏ ବହିର ପାଠକ/ପାଠିକାମାନେ ବହିଟି ପାଇବା ମାତ୍ରେ ପହଳିଗୁଡିକର ଉତ୍ତର ଖୋଜି ବସିବେ ଓ ଏହିଭଳି ନୂଆ ନୂଆ ପହଳି ସବୁ ଲେଖିବା ପାଇଁ ବହିଟି ପ୍ରେରଣା ଯୋଗାଇବ ।

ସୃଜନିକା ପରିବାର

୧



ହାତୀ ନୁହେଁ ହେଲେ
ବଡ଼ ଶରୀର,
ଧଳା ଦେହ ଲମ୍ବ
ଦୁଇ ମିଟର,



ବରଫେ ବୁଲେ ମୁଁ
ପାଣିରେ ବୁଡେ,
ଶିକାର ପାଇଲେ
ଆଉ ନ ଛାଡେ,



ଗୋଜିଆ ମୁହଁ;
ତୁମସାଙ୍ଗୁ ବାଲୁ
କିଏ ମୁଁ କହ ?





୨

ମାଛ ଘରେ

ଭୋଜିଖିଆ କୁଣିଆ,

ମାଛ ପେଟେ

ଲୁଚିଥାଏ କଣିଆ,



ଲମ୍ବା ଦେହ

ଅଧ ମିଲି ମିଟର,

ବୀଜାଣୁ ସେ

ହୁଏ ଲଟପଟର,

ଜଣାନାହିଁ

କିସ ତା'ର କାମଟି,



କିଏ ସିଏ

କହ ଭାଇ ନାମଟି ?



୩

ଆକାଶେ ଆସେ

ଆକାଶେ ଯାଏ

ଭିତର ନଥାଇ

ପାଣି ଉଠାଏ ।

୪

ବରଷା ଦିନେ
ଉଡେ ସେ ଉଡେ
ଦେହରେ ଜାଳେ ନିଆଁ,
ଏମିତି ନିଆଁ
ନଯାଏ ତାତି
ନଥାଏ ଟିକେ ଧୂଆଁ,
ସବୁଜ ନୀଳ ଦିଶେ,
କେଡେ ସୁନ୍ଦର
ଚିକରି ମିକି



ଏଠେଇ ସେଠି ବସେ।
କିଏରେ ସିଏ ଭାଇ,
ଲୁସିଫେରିନ୍
ପେଟରେ ଭରି
ଖୁସିରେ ଉଡୁଥାଇ।







୫



ପକ୍ଷୀ ଜାତି ଯେଣୁ
ମୁହଁରେ ଥଣ୍ଟ,
ବରଫେ ରହେ ମୁଁ
ବାନ୍ଧଇ ମେଣ୍ଟ,
ପିଠିଟା ଅନ୍ଧାର
ପେଟ ଧୋବଲା,
ଡେଣାରେ କେବଳ
ମାରେ ଆହୁଲା,
ସାନସାନ ଡେଣା
ଉଡ଼ି ନପାରେ,



ମାଛକୁ ଶିଉଳି
ଆହାର କରେ,
ଷୋଳ ପ୍ରକାର,
ମିଳେ ଦେଖିବାକୁ
କି ନାମ ମୋର
କହିବ ଯିଏ,
ସମୁଦ୍ର କୂଳରେ
ବୁଲିବ ସିଏ।

୬



ବିଶାଳ ଶରୀର
ବଙ୍କଟେ ରୂପ,
ଆଖିକୁ ଦିଶଇ
ଦପରଦପ,
ଦିନରେ ନଦିଶେ
ରାତିରେ ମିଳେ,
କେଉଁ ଚିଜ ସିଏ
ଗଗନେ ଖେଳେ ?

୭

ମାଟିରେ ରହେ ସେ
ପାଣିରେ ରହେ,
ଆଙ୍ଗୁଡି ଲଗେଇ
ଆହାର ଖାଏ
କହିଲ ଦେଖି?
ଅଣ୍ଡା ଦିଏ ସିନା
ନୁହେଁ ସେ ପକ୍ଷୀ।






୮

ଶହେକେ ଛ'ଭାଗ
ଧରାର ଭୂଇଁ,
ବାଘଭାଲୁ ସେଠି
ଗୋଟିଏ ନାହିଁ,
ହାଉଁଆ ଶୀତକୁ
ଦାଉଁଆ ଖରା,
ସପନ ସେଠେଇଁ
ବାଲ୍‌ଟି ଗରା,
ନଈନାଳ ନାଇଁ
ନାଇଁ ପୋଖରୀ
ଦୂରେ ଦିଶୁଥାଏ
ଜଳ ଲହରୀ
କିଏ କହିବ?
କେଉଁଥାନ ସେଟା
ନାମଟି ଭାବ।






୯

ତରା ତ ତରା
ସରଗ ତରା
କୋଉ ତରା ସିଏ କହ,
ଅତି ନିକଟରେ
ଥାଇ ଆମର
ତତେଇ ପାରଇ ଦେହ ।





୧୦

ଏମିତି ସିଏ,
ସାତରଙ୍ଗ ମିଶା
ଦେଖି ନ ହୁଏ
ଦୂର ଆକାଶରେ ଘର,
ଘରୁ ବାହାରିସେ
ବିଛାଡି ପଡ଼େ
ନଈନାଳ ଘର ଦ୍ୱାର ।





୧୧

ନିହାତି ଛୋଟ,
ଥୋକେ କହୁଥିଲେ
ତା'କୁ ଅଦ୍ଭୁତ
ଆଖିକୁ ନଯାଏ ଦେଖା,
ଯନ୍ତର ଲଗେଇ
ଭାଙ୍ଗିଲେ ତାକୁ
କୋଡିଏ ଖଣ୍ଡ ସେ ଏକା ।
କିଏ ସେ ସେହି,
ସବୁ ଦରବର
ମୂଳଗୋସେଇଁ ।







୧୨

ଅସୁର ନୁହେଁ,
ଚୁଲିରୁ ବାହାରି
ଡରେଇ ଦିଏ
ଜୀବଜନ୍ତୁ ଗଛଲତା,
ମହଲଣ କରେ
ଖରାଆଲୁଅ
ସବୁଠି ଅମରମତା ।
ପବନ ନ ଥିଲେ
କିଏ ସେ ମତେ
ହଟେଇ ପାରନ୍ତା କହ,
ସହର ବଜାର
ଆଜିକାଲିକା
ମୋ ଯୋଗୁଁ ଉଠାନ୍ତି କୋହ ।
କହ ମୁଁ କିଏ?
ଖଣ୍ଡିଆ ନକରି
ଜୀବନ ନିଏ ।



୧୩

ଗ୍ରହ ନୁହେଁ ରବି
ଶଶୀ ବି ନୁହେଁ,
ଦୂର ଗଗନରେ
ସେ ଭାସୁଥାଏ,
ତୋଫାଳିଆ ଦେହ
ରାତିରେ ଦିଶେ,
ତାରାମେଳେ ଦେଖି
ଆଖି ଝଲସେ,
କହରେ ପିଲେ,
ବରଫ ଢଙ୍କା କେ'
ଶୂନ୍ୟରେ ବୁଲେ ।



୧୪

ଚକ୍‌ଚକିଆ ଦେହଟା ସିନା
ପେଟଟା ମୋର ସରୁ,
କାଗଜ ପରି ପତଳା ଡେଣା
ଉଡିବାରେ ମୁଁ ଗୁରୁ,
ଦେହକୁ ଚାହିଁ ବିରାଟ ଆଖି
ପାଟିଟା ଏଡେ ବଡ,
ଦି ଯୋଡା ଡେଣା ଅଛି ମୋହର
ନହୁଏ ଫଡଫଡ ।
ଚଢେଇ ଜାତି ନୁହେଁ;
ଚାଳିଶ ଫୁଟ ଦୂରରୁ ଦେଖି
ଆହାର କରି ଖାଏଁ ।
ନାମଟି ମୋର କିସ ?
ଯିଏ କହିବ ଘରୁ ତାଙ୍କର
ମଶା ହୋଇବେ ନାଶ !





୧୫

ଅଜବ ଜୀବ,
ଏତେ ଏତେ ଦାନ୍ତ
କିସ ଦେଖିବ,
ନଦିଶେ କାନ,
ବିଶାଳ ଗଣ୍ଡିକୁ
ମୁଣ୍ଡ ଟି ସାନ,
ଦିଏ ମୁଁ କ୍ଷୀର,
ପାଣିର ପ୍ରାଣୀ ମୁଁ
ବଡ ସୁଧାର,



ଦି ବରଷରେ,
ଗୋଟିଏ ଛୁଆ ମୁଁ
ଜନମକରେ,
ନାମଟି ମୋର
କହିକେ ପାରିବ
ଦିଅ ଉତ୍ତର।



୧୬

ଥଣ୍ଡା ଅଞ୍ଚଳ,
ନାହିଁ ଲୋକବାକ
ଭାଲୁ ଗଯ୍ଳ,
ଗଛଲତା ଦେଖାନାହିଁ,
ଆମେରିକାଠାରୁ
ଦ୍ୱିଗୁଣ ବଡ
ଏମିତି ଇଲାକା କାହିଁ ?



୧୭



ଥାଏ ମୁଁ ଥାଏ,
ଜୀବ ଜଗତରେ
ପରାଣନିଏ
ମଣିଷ ନଥିଲା ଜାଣି,
ଦେବତାର କୋପ
ବୋଲିକା କହି
ଦେଉଥିଲା ପଣାପାଣି,
ଜାଣିଲା ଯେବେ,
ବାଟ କାଢ଼ି ମତେ
ଜଗିଲା ତେବେ



ଆଖିକୁ ନଦିଶେ ମୁହିଁ,
ମତେ ନଜାଣିଲେ
କହି ଦଉଚି
ରୋଗରେ ପଡ଼ିବ ଭାଇ ।



୧୮

ତା'ଯୋଗୁଁ ଭାଇ,
ମଣିଷ ମଣିଷ
ଭେଦ ଲାଗଇ,
ଦେହର ଅଙ୍ଗ,
ପେଟ ପାଟି ପିଠି
ସବୁରି ସାଙ୍ଗ,
ଦୁଇଟା ସ୍ତର,
କାମ କରୁଅଛି
ଡିଲୁ ଅପର,
କିଏ କହିବ,
କେଉଁ ଅଙ୍ଗ ସିଏ
ମନରେ ଭାବ।











୧୯

ଲୋକେ କହନ୍ତି ସେ
ଆକାଶୁ ପଡ଼େ,
ବରଷା ନୁହେଁ ସେ
ଟୋପା ସଜାଡ଼େ,
ଓଦା ପବନକୁ
ଆଶରା କରି,
ଥଣ୍ଡା ଜାଗା ଦେଖି
ବସଇ ଥିରି,
ଘାସ ପତରରେ
ଆସନ ପାରି,
ଶୀତ ସକାଳରେ
ହସଇ ମାତି,
ନାମଟି କୁହ,
ତାକୁ ଦେଖିବାକୁ
ପଦାକୁ ଯାଅ ।





୨୦

କିଏରେ ସେଇ,
ଲୁହାଭଳି ଧାତୁ
ମାଡି ବସଇ,
ଜଳାଏ ଲୁହାକୁ
ଲୁହାକୁ ଖାଏ,
ପାଣି ଯୋଗୁଁ ସିନା
ଜୀବନ ନିଏ,
ଥରେ ଲାଗିଗଲେ
ଆଉ କି ଛାଡେ
ଅମ୍ଳଜାନକୁ
ଧରି ବିଗାଡେ,
ଲୁହାରୁ ଜାତ,
ଲୁହାକୁ ଟିଇକେ
ମାରଇ ନାତ ।





୨୧

ଜଗତେ ଯେତେକ
ଧାତୁ ଅଛଇ,
ସେ ଭିତରେ ବେଶୀ
ଓଜନ ସେହି,
ମିଶ୍ରଧାତୁ ରୂପେ
ମିଳଇ ତାହା,
କଲମ ମୁନକୁ
ହୁଅଇ ସାହା,
ଭଙ୍ଗୁର ପଦାର୍ଥ
ଦିଶଇ ଧଳା,
କିସ ନାମ କିଏ
କହିବ ପିଲା।।







୨୨

ଖରା ତ ଖରା,
ଖରା ଜାଳିଦିଏ
ଦୁନିଆ ସାରା,
ପତରରେ ପଡେ ଖରା,
କଞ୍ଚା ପତରରେ
ଅଛି ଦରବ
ଜଗିଥାଏ ତାକୁ ସାରା ।
କିଏ କହିବ,
ପତର ଭିତରେ
ଅଛିକେ ଦ୍ରବ୍ୟ
ଖରାକୁ ଆଗୁଳେ ନିତି,
ଭାଲ୍‌ଭ ପରିକା
କରଇ କାମ ।
ପତର ନଯାଏ ତାତି ।



## ୨୩

ଆମିନୋ ଅମ୍ଳକୁ
ନେଇ ତିଆରି,
କୋଉ ଚିଜ ସେ ତ
ଲୋଡ଼ା ସବୁରି,
ସବୁ ଜୀବକୋଷେ
ଥାଏ ହାଜର,
ତା' ବିନା ଜୀବନ
ଯାଏ କୋଷର,
ଗ୍ରୀକ୍ ଭାଷାରେ
ଅର୍ଥ 'ପ୍ରଥମ',



ମନେରଖ ତା'କୁ
ନକରି ଭ୍ରମ,
ଗଛଲତା ସିନା
ଆପେ ତିଆରେ,
ମଣିଷ ଖୋଜଇ
ତା'କୁ ଖାଦ୍ୟରେ,
ସେ କେଉଁଚିଜ?
ଦେହୁ କମିଗଲେ
ରୋଗକୁ ଭଜ।



୨୪



ସଞ୍ଜ ଆସିଗଲେ
ଅସଂଖ୍ୟ ତାରା,
ବିଛେଇ ପଡ଼ନ୍ତି
ଆକାଶ ସାରା,
ଅସଂଖ୍ୟ ବୋଲି କା
କହୁଚ ସିନା,
ଗ୍ଭହିଁଲେ ପାରିବ
କରି ଗଣନା,
ଜାଣକି ତୁମେ?
ଖାଲି ଆଖିରେ ଯା
ଦେଖୁଚେ ଆମେ,
ସଂଖ୍ୟା ତା କେତେ,
କେତେ ତାରା ବୋଲି
ଯିବ ପରତେ ।





୨୫

କୋଲା କୋଲା ହୋଇ
କୋଡ଼ିଏ କୋଲା,
ମାଟିରେ ଜନମେ
ବନେ ମସଲା,
ଔଷଧ ଗୁଣରେ
ପୂରିଚି ଦେହ;
ଅଲିଅମ୍ ଭରା,
କି ନାମ କହ ।





୨୬



ବଡ କଅଁଳିଆ
ଖଣିଜ ଚିଜ,
ଦିଶେ ପାଉଁଶିଆ
ପୁଣି ସବୁଜ,
ଆଟଲାଣ୍ଟିକ୍‌ର
କୂଳଟା ସାରା,
ସବୁଠାରୁ ବେଶୀ
ହୋଇଚି ଭରା,
ମାଗ୍‌ନେସିଅମ୍
ଅଟେ ସେ ଜାଣ,
ବେଶୀ ତାତିଗଲେ
ହୁଅଇ ଟାଣ,



କେତେ ଜାତି କାମେ
ସେହୁ ଲାଗଇ,
ରବର, ଟାଇଲ୍,
କାଗଜ ହୋଇ,
ବାସନା ପାଇଁ କି
ମାର ଦେହରେ,
ଚମକୁ ଜଗେ ସେ
ଖରା ଦିନରେ,
କି ଚିଜ ସିଏ?
ଧଳା ଫିଙ୍ ଫିଙ୍
ଖସଡ଼ିଯାଏ ।



୨୭
ନିଜର ଖାଇବା
ନିଜ ଦେହରେ
କହ କେଉଁ ଜୀବ
ତିଆରି କରେ ?



୨୮

ଆଳୁଅ ଥିଲେ
ଜନମ ହୁଏ
ଆଲୁଅ ବିନା ମରେ,
ଖରା ଆଗରେ
ଦୁଇ ଓଳି ସେ
ଲମ୍ବୁରା ଦେହ କରେ,
କିଏରେ କିଏ ସେଇ ?
ଦେହକୁ ଛାଡ଼ି
କେବେ କୁଆଡ଼େ
ଯାଇ ତଏ ପାରେନାହିଁ ।








୨୯

ମହମବତୀ ଜଳିଲେ ଭାଇ
ଆଲୁଅ ଯେବେ ମିଳେ,
ଥିଇରି ଥିରି ମହମ ସଙ୍ଗେ
ପାଣିମହମ ଗଳେ ।
ବତୀ ଜଳିଲେ ଅଙ୍ଗାରକାମ୍ଳ
ତହିଁରୁ ସିନା ହୁଏ,
କୁଆଡେ ହଜେ ମହମ ଯାକ
କେଉଁ ରୂପକୁ ଯାଏ ?
ବୁଝାଇ ଦିଅ କହି,
ସଭିଏଁ ଜାଣ ଜଡ ପଦାର୍ଥ
କ୍ଷୟ ହୁଅଇ ନାହିଁ ।



୩୦



ଏମିତି ପାଣି,
ଭାରୀ ଖଟାଳିଆ
ସ୍ପର୍ଶିଲେ ଜାଣି,
ନାଲି କରିଦିଏ
ନେଳି କାଗଜ,
ଜୈବ, ଅଜୈବ
ଦୁଇ ପ୍ରଭେଦ,
ଜୈବ ବୋଲନ୍ତେ
ନ କରେ କ୍ଷତି,
ଅଜୈବ ଛୁଇଁଲେ
ବଡ ବିପତ୍ତି ।
ପୋଡିଯିବ ଦେହ
ଅସାବଧାନେ,
ପାଣି ଢାଳି ଢାଳି
ଧୁଅ ଯତନେ ।
ସେ କେଉଁ ଦ୍ରବ୍ୟ;
କହିଲେ ବିଜ୍ଞାନ
ପାଠ ପଢିବ ।

୩୧



ହଳଦୀ ନୋହି ସେ
ହଳଦିଆ ରଙ୍ଗ,
ପାଣିରେ କେବେହେଁ
ନୁହଁଇ ବିଭଙ୍ଗ,
ଅଙ୍ଗାର ସହିତ
ଯାଏ ସେ ମିଳାଇ,
ଜଳିଲେ ନେଳିଆ
ଆଲୋକ ଦେଖାଇ,
ସ୍ତର ପରେ ସ୍ତର
ଥାଏ ମାଟି ତଳେ,
ଆମେରିକା ଦେଶେ
ବେଶୀ କରି ମିଳେ
କଅଣ କହ ?
କହି ଦେଇ ସାରି
ପୁରସ୍କାର ନିଅ ।





୩୨

ଏମିତି ଏକ ସୁଅ,
ଯୁଆଡେ ତାକୁ ନିଅ,
ଯିବସେ ବାଟ ଧରି,
ମଣିଷ ତାକୁ ଡରି,
ଦୁଇ ଜାତିର ସୁଅ,
ଗୋଟିଏ ଅହରହ,
ଆର ସୁଅଟି ଜାଣ,
ଦଉଡେ ପୁଣ ପୁଣ,
ସେକେଣ୍ଡକରେ ସିଏ
ପନ୍ଦ୍ରଶଥର ଯାଏ,
ଖଟେ ଗ୍ରୀଜର ପରି,
ଧାଏଁ ଆଶରା ଧରି ।





୩୩

କହସେ ମାଛ ନାଆଁ,
ରକତ ତାର ନୀଳ ବରନ
ସାଗର ତା'ର ଗାଆଁ ।
ବଇରି ଯେବେ ଦେଖେ,
ଦେହରୁ ଛାଡ଼ି ତରଳ କଳା
ନିଜକୁ ଛାପି ରଖେ,
କଅଁଳ ଦେହ ଭାରି
ଦେହରେ ଅଛି ହୃଦୟ ତିନି
କେ ହେବ ତା'ର ସରି ।
କହିବ କିଏ କୁହ,
ମାଛ ହୋଇବି ଏଣ୍ଡୁଅ ପରି
ବଦଳାଏ ସେ ଦେହ ।



୩୪

ବିଲୁଆ ନାମ ତା
　　ନୁହେଁ ବିଲୁଆ,
ମୁଣ୍ଡ ଆଉ ମୁହଁ
　　ସେମିତିକିଆ,
ଉଡିପାରେ ସେ
　　ଡେଣା ମେଲାଇ,
ଏଡେ ଏଡେ ଦାନ୍ତ
　　ଡର ଲାଗଇ,
ଗ୍ରହିଁଲେ ଗୋଟାଏ
　　ବଡ ନଡିଆ,





ଦାନ୍ତେ ଭାଙ୍ଗିଦବ
　　ମଡ ମଡିଆ,
ଫଳରେ ତାହାର
　　ବଡ଼ ପିରତି,
ବଗିଗ୍ଭ ଦେଖିଲେ
　　ଉଠଇ ମାତି,
ଗଛରେ ରହେ,
ଜନବସତିର
　　ପାଖରେ ଥାଏ ।

୩୫

ବଡ ସେ ଥାଏ;
ବେଲ ପୂରିଗଲେ
ସାଙ୍କୁଡିଯାଏ,
ଦେହ ତାର ଧୀରେ
ହୁଏ ଛୋଟିଆ,
ସେତେବେଳେ ନାମ
'ଧଳା ଗେଡୁଆ',
ଆଲୁଅ ଦେହ ତା
ଯାଏ ମଉଳି,





କାଳିଆ ରଙ୍ଗକୁ
ଯାଏ ବଦଳି,
ସେତିକି ବେଳେ,
ଯିଏ ହାବୁଡିଲା
ତାକୁ ସେ ଗିଳେ।
ନାମଟି କୁହ,
କହିଦବ ଯଦି
ପ୍ରାଇଜ୍ ନିଅ।

୩୬

ଜୀବନ ଅଛି
ଚ୍ଚଲି ନପାରେ,
ଉଠଇ ସିନା
ଡେଇଁ ନପାରେ,
ଏମିତି ଜୀବ ସିଏ
ଭୂଇଁର ବିଜ
ମାଟିରୁ ଟାଣି
ଆକାଶେ ଛାଡିଦିଏ ।





୩୭

ହୋଇଲେ ଥଣ୍ଡା
ପାଲଟେ ସିଏ
ପଥର ମୁଣ୍ଡା
ତାତିଲେ ଉଡ଼ିଯାଏ,
ଆକାଶେ ଯାଇ
ଭଳିକି ଭଳି
ଛଇ ଦେଖାଇ
କିଏରେ ଉଡୁଥାଏ ?





୩୮

ଏମିତି କିଏ ଅଛିରେ କାହିଁ
ଜୀବଜଗତେ କହ
ପେଟରେ ତା'ର ନଥାଏ ପୁଟା
ତଥାପି ଧରେ ଦେହ,

ଏଠେଇ ସେଠି ପଡ଼େ
ଦେହରେ ତା'ର ଗ୍ଜରିଟା ଡେଣା
ରାତି ହୋଇଲେ ଉଡ଼େ ।

୩୯

ଅତିକାୟ ବଡ଼ ସେହି ଗ୍ରହଟି
'ବରଫ ଅସୁର' ବୋଲି ନାମଟି
ପାଇଅଛି ଯେଣୁ ତୋଫା ଶରୀର
ଷୋ'ଳ ଗୋଟି ଜହ୍ନ ଆକାଶେ ତା'ର
କିଏ କହିବ ?
ନବଗ୍ରହ କଥା ମନରେ ଭାବ ।



୪୦

ଦୂରେ ଥିଲେ ବି ସେ
ପାଖରେ ଅଛି
ରାତି ପାହିଗଲେ
ଛୁଇଁ ଦେଉଛି
ଚେଇଁଥାଏ ଅହରହ,
ହାତଗୋଡ ନାହିଁ
ଝଲମଲିଆ
ନାଆଁଟି ବିଗ୍ଗିଡ଼ି କହ ।





୪୧

ସକଳ ପ୍ରାଣୀ
ଜୀବନ ପାଇଁକି
ପିଅନ୍ତି ପାଣି ।
କି ଗଛଲତା,
ଜଳ ନଥିଲେ
କି ଥାଆନ୍ତା ପତା ।
ଅଛଇ ଏକ,
ମରୁ ଅଞ୍ଚଳରେ
ଏକ ମୂଷିକ ।
ସାରା ଜୀବନ,
ଛୁଏଁନା ଜଳ ସେ
ବିନ୍ଦୁ ପ୍ରମାଣ,
ସେ କେଉଁ ଜୀବ ?
ଆମେରିକା ଗଲେ
ତା'କୁ ଦେଖିବ ।





୪୨

କେଉଁ କାମ କରି
ଆମ ପୃଥିବୀ
ଦିନରାତି କରେ
କହିବ ଭାବି ?





୪୩

ଚଢେଇ ଗୋଟିଏ ଏମିତି
ଜାଣ୍ଡ ଦିଶେନାହିଁ
ଥଣ୍ଟଟି ବଡ଼
ଜାଣିନି ଉଡିବା କେମିତି ।



୪୪

ଏମିତି ଗ୍ରହ
ଦି'ମାସରେ ସେଠି
ସୂର୍ଯ୍ୟ ଉଦୟ
ନୀଳ ହଳଦିଆ ଦେହ
ଗତିରେ ଅଟଇ
ଭାରି ଚଞ୍ଚଳ
ନାମଟି ତାହାର କହ ।



## ୪୫



କାରେଲ୍ କାପେକ୍
ନାଟକକାର,
ନାମଟି ତାହାର
କଲେ ବାହାର,
ନିର୍ଜୀବ ସିନା ସେ
ନାମ ଶ୍ରମିକ,
ପିନ୍ଧିଥାଏ ଗୋଟେ
ମେସିନ୍ ଭେକ,
ମେସିନ୍ ହେଇ ସେ
ନିଜକୁ ଗ୍ଲଳେ,
ନାହିଁ କେ ମଣିଷ
ତା'ଠାରୁ ବଳେ,



ଯେ ଦିନୁ ହୋଇଲା
ଶିଳ୍ପ ବିପ୍ଳବ,
ମଣିଷ ତାହାକୁ
କରିଲା ଠାବ,
କଳ କାରଖାନା
ପ୍ରଯୋଗଶାଳା,
ସବୁଠାରେ ତାର
ଗ୍ଳୁଛି ଲୀଳା,
କିଏ ରେ ସିଏ ?
ନିର୍ଜୀବ ହୋଇ ସେ
ସଜୀବ ହୁଏ ।

୪୬

ପତଙ୍ଗ ଜାତି,
ଜୀବନ ତାଙ୍କର
ଘରେ ଝୁଣ୍ଟନ୍ତି,
କିଏ ଗୋଟେ ମାସ
କିଏ ଦି'ମାସ,
ଜୀବନର ଚକ୍ର
ହୁଅଇ ଶେଷ,
ମାତର ଅଛଇ
ଜଣେ ଏମିତି,
ତିରିଶ ବରଷ
ଥାଏ ସେମିତି,





ଲାର୍ଭା ହୋଇ;
ଶୁଣିଲେ ତା' କଥା
ଜାବା ଲାଗଇ ।
ତା' ନାମ କିସ ?
ପତଙ୍ଗ ହୋଇବି
ଏତେ ଆୟୁଷ,
କହିବ ଯିଏ,
ପତଙ୍ଗ ମଇତ୍ର

୪୭

ଜାଣକି ଭାଇ
ମୃତ୍ତିକାମୟ
ହୁଏ କି ପାଇଁ
କିଏ ସେଥିପାଇଁ ଦାୟୀ ?
ଦି'ଜଣ କୁଆଡେ
ଅସଲ ଦୋଷୀ
ନାମ ଦୁଇ ଦିଅ କହି ।





୪୮

ସୌରଜଗତରେ
ସବୁରି ଗ୍ରହ
ସୂର୍ଯ୍ୟ ଚଉଦିଗେ ଘୂରେ
କେଉଁ ଗ୍ରହ କହ
ବାର ବରଷେ
ତାକୁ ପ୍ରଦକ୍ଷିଣ କରେ ?



୪୯

ଆହା କି ଶୋଭା
କି ମନ ଲୋଭା
ଭରିଚି ବଣ ଭୂଇଁ
ବଡ କି ସାନ
ନାହିଁ ବିଗ୍ଭର
ସବୁଠି ଥାଏ ସେହି



ବୃକ୍ଷଜଗତେ ମୂଳ
ଖାଇବା ଚିଜ
ତିଆରି କରି
ଯୋଗାଇ ଦିଏ ବଳ।

ରଙ୍ଗରେ ସିନା ଭାଇ,
ରଙ୍ଗେ ଛପିଛି
ଅସଲ ଚିଜ
ନାମଟି ଦିଅ କହି।





୫୦

ପୃଥିବୀ ରାଣୀ
ଘୂରୁଅଛି ବୋଲି
ନହୁଏ ଜାଣି
ଆପଣା ଅକ୍ଷରେ ଘୂରେ,
ଚବିଶ ଘଣ୍ଟା ଯେ
ଲାଗଇ ତାକୁ
ଘୂରି ଆସିବାକୁ ଥରେ।
ସେଇ ପରିକା
ଆଉ ଗ୍ରହ ଅଛି
ମନରେ ପକା
ଚବିଶ ଘଣ୍ଟାରେ ଥରେ,
ଘୂରି ଆସୁଅଛି
ନିଜ ଅକ୍ଷରେ
ନାମ ଗୋଟି କହ ଖରେ।



## ପହଳିଗୁଡ଼ିକର ଉତ୍ତର

୧. ମେରୁଭାଲୁ, ୨. ଏପୁଲୋପିଶିଅମ୍ ବୀଜାଣୁ, ୩. ସୂର୍ଯ୍ୟ
୪. ଜୁଳୁକୁଳିଆ ପୋକ, ୫. ପେଙ୍ଗୁଇନ୍, ୬. ତାରା,
୭. ବେଙ୍ଗ, ୮. ମରୁଭୂମି, ୯. ସୂର୍ଯ୍ୟ, ୧୦. ସୂର୍ଯ୍ୟକିରଣ,
୧୧. ଅଣ୍ଡା, ୧୨. ଧୂଆଁ, ୧୩. ଧୂମକେତୁ, ୧୪. କଙ୍କି,
୧୫. ୱାଲ୍‌ରସ୍ ବା ସିନ୍ଧୁଘୋଟକ, ୧୬. ଦକ୍ଷିଣମେରୁ,
୧୭. ଜୀବାଣୁ, ୧୮. ଚମ, ୧୯. କାକର, ୨୦. କଳଙ୍କି
୨୧. ଓସ୍‌ମିଅମ୍, ୨୨. ଷ୍ଟୋମାଟା, ୨୩. ପୁଷ୍ଟିସାର
୨୪. ପ୍ରାୟ ୧୦୦୦, ୨୫. ରସୁଣ, ୨୬. ଟାଲ୍‌କ
୨୭. ଗଛ, ୨୮. ଛାଇ, ୨୯. ଜଳୀୟବାଷ୍ପ
୩୦. ଏସିଡ୍ ଅମ୍ଳ, ୩୧. ଗନ୍ଧକ, ୩୨. ତଡ଼ିତ୍ ସ୍ରୋତ
୩୩. କଟଲ୍ ମାଛ, ୩୪. ବାଦୁଡ଼ି ଜାତିର ଉଡନ୍ତାବିଲୁଆ
୩୫. ବ୍ଲାକ୍‌ହୋଲ୍, ୩୬. ଗଛ, ୩୭. ପାଣି ୩୮. ମଥ,
୩୯. ବୃହସ୍ପତି, ୪୦. ସୂର୍ଯ୍ୟ, ୪୧. କଙ୍ଗାରୁ ମୂଷା,
୪୨. ଘୂର୍ଣ୍ଣନ, ୪୩. କିଵି, ୪୪. ବୁଧ, ୪୫. ରୋବଟ୍,
୪୬. ସ୍ଲେଣ୍ଡରବିଟଲ୍, ୪୭. ପାଣି ଓ ପବନ,
୪୮. ବୃହସ୍ପତି, ୪୯. ସବୁଜକଣିକା, ୫୦. ମଙ୍ଗଳ ।

# ସୃଜନିକାର କିଛି ପ୍ରକାଶନ

| | |
|---|---|
| ଆସ ତାରା ଦେଖିବା | ୨୫.୦୦ |
| କାହିଁକି ଭାଇ କାହିଁକି | ୨୫.୦୦ |
| କାଗଜ ଭଙ୍ଗାର ମଜା | ୧୫.୦୦ |
| କାଗଜରୁ ଆକୃତି | ୨୦.୦୦ |
| ଗଛବଇଦ | ୧୫.୦୦ |
| ପ୍ରାଥମିକ ଶିକ୍ଷାପଦ୍ଧତି | ୧୫.୦୦ |
| ଜଳ ସମ୍ପଦ | ୧୫.୦୦ |
| ଗଣିତ କୁହୁକ | ୧୨.୦୦ |
| ଆମ ମନର ଗୀତ | ୧୨.୦୦ |
| ଚନ୍ଦ୍ର ଅଭିଯାନ | ୮.୦୦ |
| ବିଜ୍ଞାନ ପହଲି | ୮.୦୦ |
| ଅଣୁରୁ ଅନ୍ତରୀକ୍ଷ | ୧୫.୦୦ |
| ଚିଡ୍ରପାହାଡରେ ଚିଡ଼ିଆଖାନା | ୧୫.୦୦ |
| ସହଜରେ ଆଙ୍କିବା ଗଛଲତା | ୧୫.୦୦ |
| ହାତ ତିଆରି ଖେଳନା | ୧୫.୦୦ |
| ପରିବେଶ ଦର୍ପଣ | ୨୦.୦୦ |

## ବିଜ୍ଞାନ ତରଙ୍ଗ

*(ଶିକ୍ଷା–ବିଜ୍ଞାନ–ବିକାଶ ଆଧାରିତ ସାଧନ ପତ୍ରିକା)*

ବାର୍ଷିକ ସାଧାରଣ ଟ୨୫.୦୦ (କେବଳ ପତ୍ରିକା ଓ ବହି ପାଇବେ)

ସହଯୋଗୀ/ଅନୁଷ୍ଠାନ ଟ୧୦୦.୦୦ (ବହି ଓ ପତ୍ରିକା ପାଇବା ସହିତ କାର୍ଯ୍ୟକ୍ରମରେ ଭାଗ ନେଇପାରିବେ)

ଆଜୀବନ ଟ୧୦୦୦.୦୦ (ଏକକାଳୀନ ଏକ ହଜାର ଟଙ୍କା)

ମୂଲ୍ୟ: ଆଠ ଟଙ୍କା